# ବୈଜ୍ଞାନିକ ଜୀବନୀ

ଲେଖକ

ଶ୍ରୀ ଗଣେଶ୍ୱର ମହାପାତ୍ର, ବି. ଏସ୍‌ସି. ବି. ଇଡ୍.

ପ୍ରଥମ ପ୍ରକାଶ

୯୫୮

ପ୍ରକାଶକ

କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ—୨

ମୂଲ୍ୟ—[illegible] ନୂଆ ପଇସା

# ବୈଜ୍ଞାନିକ ବୋଷ

ଆଧୁନିକ ଯୁଗକୁ 'ବିଜ୍ଞାନର ଯୁଗ କହିଲେ' ଅତ୍ୟୁକ୍ତି ହେବ ନାହିଁ । ବିଭିନ୍ନ ଦେଶ ବିଜ୍ଞାନର ବିଭିନ୍ନ ବିଭାଗରେ ଗବେଷଣା ଆରମ୍ଭ କରି ଦେଇଛନ୍ତି । ଭାରତବର୍ଷ ଅନ୍ୟାନ୍ୟ ଦେଶ ତୁଳନାରେ ଏ ଦିଗରେ ଉନ୍ନତି କରି ପାରି ନ ଥିଲେ ମଧ୍ୟ, କେତେଜଣ ମନୀଷୀଙ୍କର ଅଦମ୍ୟ ଚେଷ୍ଟାରେ ସେ ଅନ୍ୟାନ୍ୟ ଦେଶସହ ସମକକ୍ଷ ହେବାକୁ ସମର୍ଥ ହୋଇଅଛି । ଏହି ମନୀଷୀମାନଙ୍କ ମଧ୍ୟରେ ସାର୍ ଜଗଦୀଶଚନ୍ଦ୍ର ବୋଷଙ୍କ ନାମ ଉଲ୍ଲେଖଯୋଗ୍ୟ ।

ସାର୍ ଜଗଦୀଶ ୧୮୫୮ ଖ୍ରୀଷ୍ଟାବ୍ଦ ନଭେମ୍ବର ୩୦ ତାରିଖରେ ବଙ୍ଗଳାର ଏକ କ୍ଷୁଦ୍ର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଭଗବାନଚନ୍ଦ୍ର ବୋଷ । ଭଗବାନଚନ୍ଦ୍ର ଦେଶପ୍ରିୟ, ଦୃଢ଼ପ୍ରତିଜ୍ଞ ଏବଂ ସହାନୁଭୂତିଶୀଳ ଥିଲେ । ପିତାଙ୍କର ସମସ୍ତ ଗୁଣର ଛାପ ଜଗଦୀଶଙ୍କଠାରେ ଦେଖାଯାଇଥିଲା । ତାଙ୍କର ବାଲ୍ୟସମୟ ଫରିଦପୁରରେ ଅତିବାହିତ ହୋଇଥିଲା । କାରଣ ସେହି ସମୟରେ ତାଙ୍କର ପିତା ଫରିଦପୁରରେ ଡେପୁଟି ମାଜିଷ୍ଟ୍ରେଟ ଥିଲେ । ପିତାଙ୍କୁ ନାନାଦି ପ୍ରକାର ପ୍ରଶ୍ନ କରି ଜଗଦୀଶ ବିବ୍ରତ କରି ପକାଉଥିଲେ । ପିଲାଦିନରୁ ଜଗତର ବିଭିନ୍ନ ବିଷୟ ଜାଣିବାକୁ ଯାହାର ଆଗ୍ରହ, ସେ ବା କାହିଁକି ବଡ଼ ଦିନରେ ଅସାଧ୍ୟ ସାଧନ ନ କରିବ ? କଥାରେ ଅଛି, "ତୁଳସୀ ଦୁଇପତ୍ରରୁ ବାସେ ।"

ପାଞ୍ଚବର୍ଷ ବୟସରେ ଜଗଦୀଶ ଗ୍ରାମ ପାଠଶାଳାରେ ଶିକ୍ଷାରମ୍ଭ କରିଥିଲେ । ନବମବର୍ଷ ବୟସରେ ପାଠଶାଳା ଶିକ୍ଷା ସମାପ୍ତ କରି ସେ ଉଚ୍ଚଶିକ୍ଷା ନିମିତ୍ତ କଲିକତା ସେଣ୍ଟଜେଭିଅର୍ସ ଉଚ୍ଚ ଇଂରାଜି

ବିଦ୍ୟାଳୟରେ ନାମ ଲେଖାଇଲେ । ଏହି ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ଇଂରେଜ ଛାତ୍ରମାନେ ଭାରତୀୟ ଛାତ୍ରଙ୍କୁ ଘୃଣା ଚକ୍ଷୁରେ ଦେଖୁଥିଲେ । ତେଣୁ ଜଗଦୀଶ ଅଧିକାଂଶ ସମୟ ବଗିଚାର ଗଛପତ୍ର ଫୁଲ ବିଷୟରେ ଅନୁଧ୍ୟାନ କରୁଥିଲେ । ଏଠାରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣଲାଭ କରି ଚନ୍ଦିକଟସ୍ଥ କଲେଜରେ ବିଜ୍ଞାନ ଶିକ୍ଷା ଆରମ୍ଭ କଲେ । ଏଠାରେ ଅଧ୍ୟାପକଙ୍କ ପ୍ରେରଣା ପଦାର୍ଥବିଜ୍ଞାନ ପ୍ରତି ତାଙ୍କର ଆଗ୍ରହ ବୃଦ୍ଧି କରିଥିଲା । ଏହି କଲେଜରୁ ବି. ଏସ୍‌ସି. ପାଶକରି ଡାକ୍ତରୀଶିକ୍ଷା ନିମିତ୍ତ ସେ ଲଣ୍ଡନ ଗଲେ । ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଡାକ୍ତରୀ ଶିକ୍ଷା ସମୟରେ ତାଙ୍କୁ ଖୁବ୍ ଜ୍ୱର ହୋଇଥିଲା । ଶବର ଦୁର୍ଗନ୍ଧ ପାଇ ତାଙ୍କର ଜ୍ୱର ଅତିମାତ୍ରାରେ ବଢ଼ି ଯାଇଥିଲା । ପରେ ଅଧ୍ୟାପକଙ୍କ ଉପଦେଶାନୁସାରେ ତାଙ୍କୁ ଡାକ୍ତରୀଶିକ୍ଷା ତ୍ୟାଗ କରିବାକୁ ପଡ଼ିଲା ।

୧୮୮୧ ଖ୍ରୀଷ୍ଟାବ୍ଦରେ ସେ କେମ୍ବ୍ରିଜ ବିଶ୍ୱ ବିଦ୍ୟାଳୟରେ ବିଜ୍ଞାନଶିକ୍ଷା ଆରମ୍ଭ କଲେ । ଏଠାରୁ ପ୍ରକୃତି ବିଜ୍ଞାନରେ ବୃତ୍ତିପାଇ ବି.ଏ. ପାଶ କଲେ ଏବଂ ତତ୍ ପରବର୍ଷ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ବି.ଏସ୍‌ସି. ଉପାଧି ଲାଭ କଲେ । ଏଠାରେ ସେ ବିଦେଶୀ ଶିକ୍ଷା ଶେଷ କରି କଲିକତା ପ୍ରତ୍ୟାବର୍ତ୍ତନ କଲେ ।

୧୮୮୫ ଖ୍ରୀଷ୍ଟାବ୍ଦରେ ୨୬ ବର୍ଷ ବୟସରେ ଜଗଦୀଶଚନ୍ଦ୍ର ପ୍ରେସିଡେନ୍‌ସି କଲେଜରେ ଅଧ୍ୟାପକ ରୂପେ ନିଯୁକ୍ତ ହେଲେ । ସେ ଭାରତୀୟ ହୋଇଥିବାରୁ ତାଙ୍କୁ ଅନ୍ୟାନ୍ୟ ଇଉରୋପୀୟ ସହକର୍ମୀଙ୍କ ବେତନର ଦୁଇତୃତୀୟାଂଶ ଦିଆଗଲା । ଏପରି ବ୍ୟବହାରର ପ୍ରତିବାଦ କରି ସେ ଦରମା ପ୍ରତ୍ୟାଖ୍ୟାନ କଲେ । କିନ୍ତୁ ତାଙ୍କର କାର୍ଯ୍ୟକୁଶଳତା ଦେଖି ଉପରେକୁ ତାଙ୍କୁ ପୂର୍ଣ୍ଣ ବେତନରେ ତିନିବର୍ଷପରେ ସ୍ଥାୟୀ ଅଧ୍ୟାପକ ରୂପେ ନିଯୁକ୍ତ କଲେ । ଶ୍ରୀଯୁକ୍ତ ବୋଷ

ଏହି ସମୟରେ ନିଜର ଘରେ ଗୋଟିଏ ବିଜ୍ଞାନାଗାର ନିର୍ମାଣ କରାଇ ସେଥିରେ ବିଦ୍ୟୁତ ଚୁମ୍ବକଜନିତ ତରଙ୍ଗ ସମ୍ବନ୍ଧରେ ଗବେଷଣା ଆରମ୍ଭ କଲେ । ଏହି ତରଙ୍ଗର ଧର୍ମ ପରୀକ୍ଷା କରିବା ନିମନ୍ତେ ଏକ ଯନ୍ତ୍ର ତିଆରି କରିବାରେ ସେ କୃତକାର୍ଯ୍ୟ ହୋଇଥିଲେ । ପରବର୍ତ୍ତୀ କାଳରେ ସେ ବିଭିନ୍ନ ବୈଜ୍ଞାନିକ ପ୍ରବନ୍ଧ ଭିନ୍ନ ଭିନ୍ନ ପତ୍ରିକାରେ ପ୍ରକାଶ କରାଇଥିଲେ ଏବଂ କେତେକ ଲେଖା ଇଂଲଣ୍ଡର ରଏଲ ସୋସାଇଟିକୁ ପଠାଇଥିଲେ । ରଏଲ ସୋସାଇଟି ତାଙ୍କର ଲେଖାକୁ ପସନ୍ଦ କରିବା ସଙ୍ଗେ ସଙ୍ଗେ ପାର୍ଲିମେଣ୍ଟ ଜରିଆରେ ଉପହାର ସ୍ୱରୂପ କେତେ ଟଙ୍କା ମଞ୍ଜୁର କରାଇଥିଲେ ଏବଂ କିଛିଦିନ ପରେ ଲଣ୍ଡନ ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟର ଉପାଧି ଦେଇଥିଲେ ।

ଏହାପରେ ଡକ୍ଟର ବୋଷ ବିନା ତାରରେ ବୈଦ୍ୟୁତିକ ସଙ୍କେତ ଶୂନ୍ୟରେ ପଠାଇବା ବିକାଶେ ଗବେଷଣା କଲେ ଓ କୃତକାର୍ଯ୍ୟ ହେଲେ । ବିନା ତାରରେ ବୈଦ୍ୟୁତିକ ଶକ୍ତି କିପରି ପଠାଯାଇ-ପାରେ ତାହା ଦର୍ଶାଇବା ନିମନ୍ତେ ୧୮୯୫ ମସିହାରେ କଲିକତା ଟାଉନ ହଲରେ ବଙ୍ଗଳାର ଲାଟଙ୍କ ସମକ୍ଷରେ ପରୀକ୍ଷା କରି ଦେଖାଇ ଦେଇଥିଲେ । ଏହି ବିଦ୍ୟୁତଶକ୍ତି ଦ୍ୱାରା ସେ ଗୋଟିଏ ଭାରୀ ପଦାର୍ଥକୁ ସ୍ଥାନାନ୍ତରିତ କରି ପାରିଥିଲେ ।

ଏହାପରେ ଡକ୍ଟର ବୋଷ ତିନୋଟି ବିଗରେ ଗବେଷଣା କରିଥିଲେ । ଯଥା:—(୧) ବୈଦ୍ୟୁତିକ ତରଙ୍ଗର ଧର୍ମ ଓ ଆଲୋକ ତରଙ୍ଗ ସହ ଏହାର ସାମଞ୍ଜସ୍ୟ, (୨) ପ୍ରାଣୀଜନ୍ତୁ ଓ ଉଦ୍ଭିଦ ଜନ୍ତୁ ମଧ୍ୟରେ ସାମଞ୍ଜସ୍ୟ ଏବଂ (୩) ସଜୀବର ପ୍ରକୃତି ମଧ୍ୟରେ ଐକ୍ୟ । ଏ ବିଗରେ ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହେବା ପୂର୍ବରୁ ସରକାରଙ୍କ ତରଫରୁ ତାଙ୍କୁ ଇଉରୋପ ପଠାଯାଇଥିଲା । ଏପରି ସ୍ଥାନାନ୍ତର ଘଟି ନ ଥିଲେ ସମ୍ଭବତଃ ସେ ଆଜି ମାର୍କୋନିଙ୍କ ସ୍ଥାନ ଅଧିକାର କରି ବସିଥାନ୍ତେ ।

ପାରିସ୍‌ରେ ବସୁଥିବା ବିଜ୍ଞାନ କଂଗ୍ରେସରେ ଯୋଗଦେବା ପାଇଁ ଡକ୍ଟର ବୋଷ ୧୯୦୩ରେ ଜନ୍ମଭୂମି ତ୍ୟାଗକଲେ । ସେଠାରେ ସେ ସଜୀବ ଓ ନିର୍ଜୀବ ମଧ୍ୟରେ ଆଣବିକ ଉତ୍ତେଜନା ସମ୍ବନ୍ଧୀୟ ଗବେଷଣା ପ୍ରକାଶ କରିଥିଲେ । ଏହା ସାରା ଜଗତକୁ ଚମତ୍କୃତ କରିଥିଲା । ଇଂଲଣ୍ଡର ରଏଲସୋସାଇଟି ଦ୍ୱାରା ନିମନ୍ତ୍ରିତ ହୋଇ ତାଙ୍କର ତଥ୍ୟ ପ୍ରକାଶ କରିଥିଲେ । କିନ୍ତୁ ଶରୀରତତ୍ତ୍ୱବିତ୍ ସାର ସାଣ୍ଡରସନ ତାଙ୍କର ଏହି ଗବେଷଣାର ପ୍ରତିବାଦ କରି କହିଥିଲେ , "ଉଦ୍ଭିଦ ମଧ୍ୟରେ ଉତ୍ତେଜନା ଦେଖାଯିବା ନିତାନ୍ତ ଅସମ୍ଭବ; ଡକ୍ଟର ବୋଷଙ୍କ ବହୁ ଦିନର ଗବେଷଣା ବୃଥାମାତ୍ର । ଡକ୍ଟର ବୋଷ ଉଦ୍ଭିଦ ବିଜ୍ଞାନ ଗବେଷଣାରୁ ଅପସରି ଯାଇ ପଦାର୍ଥବିଜ୍ଞାନ ସମ୍ବନ୍ଧରେ ମନୋନିବେଶ କରିବା ଉଚିତ ଏବଂ ଏହି ସମ୍ବନ୍ଧୀୟ ଗବେଷଣାକୁ ଶରୀରତତ୍ତ୍ୱବିଦ୍‌ମାନଙ୍କ ଉପରେ ଛାଡ଼ିଦେବା ବିଧେୟ ।" ତେଣୁ ରଏଲସୋସାଇଟି ତାଙ୍କର ଏହି ତଥ୍ୟକୁ ମୁଦ୍ରଣ କଲେ ନାହିଁ । ଏହି ସମ୍ବାଦ ସେ ଭାରତକୁ ଫେରି ଆସିବା ପରେ ପାଇବାଯୋଗୁଁ ପୁନର୍ବାର ସେ ଇଂଲଣ୍ଡ ଯାଇ ରଏଲ-ସୋସାଇଟିର ବିଜ୍ଞାନାଗାରରେ ଉପଯୁକ୍ତ ପରୀକ୍ଷାଦ୍ୱାରା ଏହି ତଥ୍ୟର ସତ୍ୟତା ପ୍ରମାଣିତ କରିଥିଲେ । ସେ ଏହି ଗବେଷଣାରେ ଅଧିକ ମନୋନିବେଶ କରି Resonant Recorder ନାମକ ଏକ ସୂକ୍ଷ୍ମ ଯନ୍ତ୍ର ଉଦ୍ଭାବନ କଲେ । ଏହି ଯନ୍ତ୍ରଦ୍ୱାରା ଉଦ୍ଭିଦର ଉତ୍ତେଜନା ସ୍ୱତଃ ପ୍ରକାଶ ପାଇ ପାରୁଥିଲା ଏବଂ ସ୍ନାୟବିକ ଉତ୍ତେଜନାର ଗତି ଜଣା ପଡ଼ୁଥିଲା । ଏହି ଯନ୍ତ୍ରଦ୍ୱାରା ଆଘାତପ୍ରାପ୍ତ ଉଦ୍ଭିଦର ଆଭ୍ୟନ୍ତ-ରୀଣ ପ୍ରତିକ୍ରିୟା ·୦୭ ସେକେଣ୍ଡରେ ଜଣା ପଡ଼ୁଥିଲା ଏବଂ ପାରିପାର୍ଶ୍ୱିକ ଅବସ୍ଥା ଭେଦରେ ଏହି ଉତ୍ତେଜନା ପରିବର୍ତ୍ତିତ ହେଉଥିଲା ।

ଉତ୍ତେଜନାର ଗତି ଉଷ୍ମ ଅବସ୍ଥାରେ ଅଧିକ ଏବଂ ଶୀତଳ ଅବସ୍ଥାରେ କମ୍ ଜଣାପଡ଼ୁଥିଲା । ବିଷାକ୍ତ ବା ମାଦକଦ୍ରବ୍ୟଦ୍ୱାରା

ପ୍ରାଣୀମାନଙ୍କ ମଧ୍ୟରେ ଯେପରି ଉତ୍ତେଜନା ସୃଷ୍ଟି ହୁଏ, ଉଦ୍ଭିଦ-ମାନଙ୍କ ମଧ୍ୟରେ ସେହିପରି ଘଟେ । ଡକ୍ଟର ବୋଷ ଆହୁରି ମଧ୍ୟ ପ୍ରମାଣ କରିଥିଲେ ଯେ, ଉଦ୍ଭିଦ ରାତିରେ ଶୁଏ ଏବଂ ସକାଳେ ଉଠିଥାଏ । ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କ ଧାରଣା ଥିଲା ଯେ, ଉଦ୍ଭିଦ ଓ ପ୍ରାଣୀ ମଧ୍ୟରେ ସାମଞ୍ଜସ୍ୟ ନାହିଁ । ମାତ୍ର ତାହା ଏହି ଯନ୍ତ୍ରର କାର୍ଯ୍ୟଦ୍ୱାରା ଦୂରୀଭୂତ ହେଲା । ଏହାପରେ ସେ Oscillating Recorder ନାମକ ଅନ୍ୟଏକ ସୂକ୍ଷ୍ମଯନ୍ତ୍ରଦ୍ୱାରା ଉଦ୍ଭିଦର ସାମାନ୍ୟ ଉତ୍ତେଜନା ଦର୍ଶାଇବାରେ ସମର୍ଥ ହୋଇଥିଲେ ।

ଡକ୍ଟର ବୋଷଙ୍କ ଖ୍ୟାତି କ୍ରମେ ବୃଦ୍ଧି ପାଇବାକୁ ଲାଗିଲା । ସେ କଲିକତା ବିଶ୍ୱବିଦ୍ୟାଳୟରୁ ବିଜ୍ଞାନରେ ଡକ୍ଟରେଟ୍ ପାଇଲେ । ପଞ୍ଜାବ ବିଶ୍ୱବିଦ୍ୟାଳୟ ତାଙ୍କୁ ବାରଶହ ଟଙ୍କା ଅର୍ପଣ କରିଥିଲେ । କିନ୍ତୁ ସେ ଉକ୍ତ ଟଙ୍କାକୁ ଏକ ଗବେଷକଙ୍କୁ ବୃତ୍ତି ସ୍ୱରୂପ ଦେବାପାଇଁ ସେହି ବିଶ୍ୱବିଦ୍ୟାଳୟକୁ ପ୍ରତ୍ୟର୍ପଣ କରିଦେଇଥିଲେ ।

୧୯୦୩ ମସିହାରେ ଭାରତର ସରକାର ତାଙ୍କୁ C. I. E. ଉପାଧିରେ ଭୂଷିତ କରିଥିଲେ । ୧୯୧୧ରେ ପଞ୍ଚମଜର୍ଜ ଗାଦି ପାଇଲାବେଳେ ତାଙ୍କୁ C. S. I. ପଦ ପ୍ରଦାନ କରିଥିଲେ । ୧୯୧୭ ମସିହାରେ ତାହାଙ୍କୁ Knight ଉପାଧି ଦାନ କରାଗଲା । ରଏଲ-ସୋସାଇଟି ତାଙ୍କୁ ଫେଲୋରୂପେ ଗ୍ରହଣ କରିଥିଲେ ଓ ସ୍କଟଲଣ୍ଡରେ ସେ L. L. D. ଉପାଧିପ୍ରାପ୍ତ ହୋଇଥିଲେ ।

ଚାକିରିରୁ ଅବ୍ୟାହତି ନେବାପରେ ସେ ଗବେଷକ ଗୃହ-ମାନଙ୍କପାଇଁ ତାଙ୍କ ଘରର ଉତ୍ତର ଦିଗରେ ଏକ ଗବେଷଣାଗାର ୧୯୧୭ ମସିହାରେ ପ୍ରତିଷ୍ଠା କଲେ । ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କପାଇଁ ଏହାର ଦ୍ୱାର ଉନ୍ମୁକ୍ତ ଥିଲା । ଏହା ନାଲନ୍ଦା ଏବଂ ତକ୍ଷଶିଳାର ପରି କାର୍ଯ୍ୟ କରିଥିଲା । ଦିନୁଦିନ ଗୃହସଂଖ୍ୟା ବୃଦ୍ଧି ପାଇବାରୁ ଏହାର ଅନେକ ଶାଖା ବିଭିନ୍ନ ସ୍ଥାନରେ ପ୍ରତିଷ୍ଠା

କରଯାଇଥିଲା । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ, ଆବିଷ୍କାରଗୁଡ଼ିକ କୌଣସି ବ୍ୟକ୍ତିବିଶେଷର ସ୍ୱାର୍ଥ ନ ହୋଇ ଜାତିର ସମ୍ପତ୍ତିରୂପେ ବିନିଯୋଗ ହେବା ଉଚିତ ।

ଏତିକରେ ତାଙ୍କର କାର୍ଯ୍ୟର ସମାପ୍ତି ଘଟି ନ ଥିଲା । ପୁଣି ସେ ଉଦ୍ଭିଦର ବୃଦ୍ଧି ମାପିବାପାଇଁ Crescograph ନାମକ ଜଟିଳଯନ୍ତ୍ର ନିର୍ମାଣ କଲେ । ଏହାର ବିବର୍ଦ୍ଧନ ଶକ୍ତି ପାଞ୍ଚ ହଜାର ଗୁଣ ଥିଲା । ଗଛର ପୁନଃରୋପଣ ସମ୍ବନ୍ଧୀୟ ତାଙ୍କର ଗବେଷଣା ଅତି ଚମତ୍କାର । ନିଶାଦ୍ରବ୍ୟଦ୍ୱାରା ସେ ଦୁଇଟି ଉଦ୍ଭିଦକୁ ଅଚେତ କରାଇ ପାରୁଥିଲେ । ଫଳତଃ ମୂଳୋତ୍ପାଟନ ଜନିତ ବାଧାରୁ ବୃକ୍ଷ ରକ୍ଷା ପାଇ ପାରୁଥିଲା । ତତ୍ପରେ ଅନ୍ୟ ସ୍ଥାନରେ ବୃକ୍ଷଟିକୁ ରୋପଣ କରାଯିବାରୁ ତାହା ଭଲ ଭାବରେ ବଢ଼ିବାର ଦେଖାଯାଇଥିଲା । ୧୯୨୨ ମସିହାରେ ସେ Photosynthetic Recorder ନାମକ ଅନ୍ୟଏକ ଯନ୍ତ୍ର ଉଦ୍ଭାବନ କରିଥିଲେ । ଏହାଦ୍ୱାରା ଉଦ୍ଭିଦ ମଧ୍ୟରେ ତରଳ ପଦାର୍ଥର ଗତି ଲକ୍ଷ୍ୟ କରାଯାଇ ପାରୁଥିଲା । ପୂର୍ବରୁ ସମସ୍ତଙ୍କର ଧାରଣା ଥିଲା ଯେ, ଉଦ୍ଭିଦ ମଧ୍ୟରେ ତରଳପଦାର୍ଥର ଗତି ମୂଳଜ ଚାପ, ବାଷ୍ପୀକରଣ ପ୍ରଭୃତି ଭୌତିକ କ୍ରିୟାଦ୍ୱାରା ନିୟନ୍ତ୍ରିତ ହୋଇଥାଏ । କିନ୍ତୁ ଡକ୍ଟର ବୋଷ ମତ ପ୍ରକାଶ କଲେ ଯେ, ତରଳ ପଦାର୍ଥର ଗତିରେ ଏଗୁଡ଼ିକ ପ୍ରଧାନ କାରଣ ନୁହନ୍ତି । ଏହା ଉଦ୍ଭିଦ ମଧ୍ୟରେ ଏକ ସ୍ପନ୍ଦନ ଦ୍ୱାରହିଁ ଘଟେ ।

ପରୀକ୍ଷାସ୍ୱରୂପ ସେ ଗୋଟିଏ ଶୁଖିଲା ଓ ଗୋଟିଏ କଞ୍ଚାପତ୍ର ନେଇ ତାହା ଉପରେ ଭେସ୍‌ଲିନର ଆବରଣ ଦେଲେ । ଉଦ୍ଭିଦଠାରୁ ପୃଥକ ହୋଇଥିବା ଯୋଗୁଁ ପତ୍ରଦ୍ୱୟ ଉପରେ ମୂଳଜଚାପର ପ୍ରଭାବ ପଡ଼ିବାର କୌଣସି କାରଣ ନ ଥିଲା । ତତ୍ପରେ ସେ ପତ୍ରଦ୍ୱୟକୁ ଉଷ୍ମ ଜଳରେ ରଖିଲେ । ଫଳରେ କଞ୍ଚା ପତ୍ରଟି ଅଳ୍ପ

ସମସ୍ତ ମଧ୍ୟରେ ସିଧା ହୋଇଗଲା । କିନ୍ତୁ ଅନ୍ୟଟିରେ କୌଣସି ପ୍ରତିକ୍ରିୟା ଦେଖାଗଲା ନାହିଁ ।

ଆହୁରିମଧ୍ୟ ଡକ୍ଟର ବୋଷ ବୃକ୍ଷରୁ କାଣ୍ଡ କାଟିଆଣି ସେଥି ମଧ୍ୟରେ ଥିବା ତରଳ ପଦାର୍ଥକୁ ଇଚ୍ଛାନୁଯାୟୀ ତଳକୁ ଏବଂ ଉପରକୁ ଗତି କରାଇ ପାରୁଥିଲେ । ତାଙ୍କର ମତରେ ଉଦ୍ଭିଦ ଉଷ୍ଣତା ଓ ଶୀତଳତା କିମ୍ବା ଅନ୍ୟ କୌଣସି ଉତ୍ତେଜନା ପାଇଲେ ସଙ୍କୁଚିତ କିମ୍ବା ପ୍ରସାରିତ ହୋଇଥାଏ । ଅନ୍ୟଏକ ସୂକ୍ଷ୍ମଯନ୍ତ୍ରଦ୍ୱାରା ସେ ଉଦ୍ଭିଦର ଏହି ସୂକ୍ଷ୍ମକ୍ରିୟା ଦେଖାଇବାରେ ସମର୍ଥ ହୋଇଥିଲେ । ଏହି ତତ୍ତ୍ୱ ସାରା ଜଗତକୁ ବିସ୍ମୟାଭିଭୂତ କରି ଦେଇଥିଲା ।

ଏହି ନୂତନ ତଥ୍ୟର ପ୍ରଚାର ପାଇଁ ସେ ଇଉରୋପ ଯାତ୍ରା କଲେ । ଭିଏନାରେ ଏକ ଉଦ୍ଭିଦ ଦେହରେ ସେ ବିଦ୍ୟୁତ ଚାଳନ କରିଥିଲେ ଏବଂ ଏହାକୁ ନିର୍ଜୀବ କରି ଦେଇଥିଲେ । ତାଙ୍କର ଆବିଷ୍କୃତ ଏକ ଔଷଧ ଦେଇ ଉକ୍ତ ନିର୍ଜୀବ ଉଦ୍ଭିଦକୁ ସେ ପୁନଶ୍ଚ ସଜୀବ କରାଇ ପାରିଲେ । ଜନତା ଏଥିରେ ଅତ୍ୟନ୍ତ ମୁଗ୍‌ଧ ହୋଇ-ଯାଇଥିଲେ ।

ଏହାପରେ ବିଭିନ୍ନ ଗବେଷଣାରେ ଡକ୍ଟର ବୋଷ ସାରା ଜୀବନ ଉତ୍ସର୍ଗ କରି ଦେଇଥିଲେ । ତାଙ୍କର ଏହି ନୂତନ ତଥ୍ୟଗୁଡ଼ିକ ବିଶ୍ୱବାସୀଙ୍କୁ ଚମତ୍କୃତ କରିବା ସଙ୍ଗେ ସଙ୍ଗେ ଭବିଷ୍ୟତ ବୈଜ୍ଞାନିକ-ମାନଙ୍କର ପଥ ସୁଗମ କରି ଦେଇଅଛି । କିନ୍ତୁ ଜଗତବାସୀ ତାଙ୍କଠାରୁ ଅଧିକ କିଛି ପାଇବାର ଆଶା ରଖିଥିବାବେଳେ ୧୯୩୭ ମସିହା ନଭେମ୍ବର ୨୩ ତାରିଖରେ ୭୯ ବର୍ଷ ବୟସରେ ଏହି ବିଜ୍ଞାନସାଧକଙ୍କର ତିରୋଭାବ ଘଟିଲା । ସେହି ଅସ୍ଥିଚର୍ମର ଶରୀର ପୃଥିବୀରୁ ବିଦାୟ ନେଇଥିଲେ ସୁଦ୍ଧା, ତାଙ୍କର ଗବେଷଣା ତାଙ୍କୁ ଚିରସ୍ମରଣୀୟ କରି ରଖିବ ।

---

# ଡକ୍ଟର ଜେନର୍

ଆଜକୁ ପ୍ରାୟ ଦୁଇଶହ ବର୍ଷ ତଳର କଥା । ବର୍କ୍ଲେ ସହରରେ ଡାକ୍ତର ଜେନରଙ୍କର ବିଶ୍ରାମ ନାହିଁ । ପ୍ରତ୍ୟହ ଦୁଇ ଚାରିଟା ଶବ'ର କବର ଦିଆ ଚାଲିଛି । ଚାରିଆଡ଼େ ହା' ହା' କାର । ମାଠାକୁରାଣୀଙ୍କ ଭୟରେ ଘରୁ ଲୋକେ ବାହାରକୁ ବାହାରୁ ନାହାଁନ୍ତି । ଟୀକା ଦିଆ ଚାଲିଛି । ତଥାପି ମୃତ୍ୟୁର ସଂଖ୍ୟା ତ କମୁ ନାହିଁ ! ଡାକ୍ତରମାନଙ୍କ ମଧ୍ୟରେ ଚହଳଣି ପଡ଼ିଛି । ବର୍କ୍ଲେ ସହର କାହିଁକି, ପୃଥିବୀର ପ୍ରତ୍ୟେକ ଜାଗାରେ ଏହି ରୋଗରୁ ରକ୍ଷା କରିବା ଡାକ୍ତର-ମାନଙ୍କ ମଧ୍ୟରେ କଷ୍ଟକର ହୋଇପଡ଼ିଲାଣି । ଡାକ୍ତରୀ ଚିକିତ୍ସାର ସଫଳତା ନ ଦେଖି କେତେକ ଲୋକ ସେମାନଙ୍କର ଗୁଣୀବିଦ୍ୟା ଆରମ୍ଭ କରି ଦେଲେଣି । ଲୋକଙ୍କଠାରୁ ନାନା ଉପାୟରେ ପଇସା ଆଦାୟ କରାଗଲାଣି । କାହିଁ ରୋଗର ତ ବିରାମ ନାହିଁ ? ତେବେ କଣ ଟୀକା ଦେବା ପଦ୍ଧତି ଭୁଲ୍ ? ନାଁ, ପୃଥିବୀର ସମସ୍ତ ଡାକ୍ତର ତ ଏକମତ ଯେ ବସନ୍ତ ଟୀକା ନେଲେ ଲୋକର ପ୍ରତିରୋଧ ଶକ୍ତି ଆସିଥାଏ । ଫଳରେ ଭବିଷ୍ୟତରେ ବସନ୍ତ ହେବାର ସମ୍ଭାବନା ନାହିଁ । ପରୀକ୍ଷା କରି ଦେଖାଯାଇଛି ଯେ ବସନ୍ତରେ ଆକ୍ରାନ୍ତ ବ୍ୟକ୍ତି ଯଦି ବଞ୍ଚେ, ତେବେ ତାହାକୁ ଦ୍ୱିତୀୟବାର ପାଇଁ ବସନ୍ତ ହୁଏ ନାହିଁ । ତେବେ ଡାକ୍ତରୀ ଚିକିତ୍ସାର ବିଫଳତା ଉପଲବ୍ଧି କରି ତତ୍କାଳୀନ ଡାକ୍ତର ଜେନର୍ ବଡ଼ ଚିନ୍ତିତ । ଶହ ଶହ ବ୍ୟକ୍ତିଙ୍କର ଶବ ତାଙ୍କ ଚକ୍ଷୁ ସମ୍ମୁଖରେ ନାଚି ଯାଉଛି । ଏ ରୋଗରୁ କଣ ବିଶ୍ୱବାସୀଙ୍କୁ ରକ୍ଷା କରି ହେବନି ! ଏଥିରେ କଣ ବିଜ୍ଞାନ ପରାଜୟ

ସ୍ୱୀକାର କରିବ ! ଲୋକଙ୍କର ମା ଠାକୁରାଣୀ ସମ୍ପର୍କରେ ଧାରଣା କଣ ଦୂରୀଭୂତ ହେବନି ! ଏସବୁ ବିଷୟ ଡାକ୍ତର ଜେନର୍‌ଙ୍କ ମନକୁ ବିବ୍ରତ କରି ପକାଉଅଛି । ତାଙ୍କର ଦୃଢ଼ ଧାରଣା ଯେ ସେ ଏହାର ସନ୍ଧାନ ନିଶ୍ଚୟ ପାଇବେ । ବହୁଦିନ ଚିନ୍ତା କରି ସେ ଏଥିରେ କୃତକାର୍ଯ୍ୟ ହୋଇଥିଲେ ଏବଂ ଲୋକଙ୍କର ଭ୍ରମ ଧାରଣା ଦୂରୀଭୂତ ହୋଇଥିଲା ।

ଏଡ୍‌ୱାର୍ଡ଼ ଜେନର୍ ୧୭୪୯ ମସିହା "ମେ" ମାସ ୧୭ ତାରିଖ ଦିନ ବର୍କ୍ଲେ ସହରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ବର୍କ୍ଲେ ସହରର ପୋପ୍ ଥିଲେ । ଜେନର୍ ପିଲାଦିନୁ ପ୍ରାକୃତିକ ବିଷୟବସ୍ତୁ ପ୍ରତି ବିଶେଷ ଆକୃଷ୍ଟ ଥିଲେ । ପକ୍ଷୀର ରବ, ନଦୀର କୁଳୁ କୁଳୁ ଶବ୍ଦ ଓ ନଦୀ ଜଳରେ ସୂର୍ଯ୍ୟ ରଶ୍ମିର ସପ୍ତରଙ୍ଗର ଦୃଶ୍ୟ ଦେଖି ସେ ଅତ୍ୟନ୍ତ ମୁଗ୍‌ଧ ହେଉଥିଲେ । ବାଲ୍ୟାବସ୍ଥାରେ ତାଙ୍କର ପିତୃ ବିୟୋଗ ଘଟିଥିଲା । ଏଣୁ ସେ ତାଙ୍କ ଭାଇଙ୍କର ତତ୍ତ୍ୱାବ-ଧାନରେ ବଢ଼ିବାକୁ ଲାଗିଲେ ।

ଆଠ ବର୍ଷ ବୟସରେ ବର୍କ୍ଲେ ନିକଟବର୍ତ୍ତୀ ସିରେନ୍ ଷ୍ଟେସନ୍ ନାମକ ସ୍ଥାନରେ ଥିବା ବିଦ୍ୟାଳୟରେ ଏଡ୍‌ୱାର୍ଡ୍ ବିଦ୍ୟାରମ୍ଭ କଲେ । ସେ ପଶୁପକ୍ଷୀମାନଙ୍କ ପ୍ରତି ଏତେ ଆକୃଷ୍ଟ ଥାଆନ୍ତି ଯେ ସମୟ ପାଇବା ମାତ୍ରେ ସେ ମଫସଲ ଅଞ୍ଚଳକୁ ଯାଇ ସେମାନଙ୍କ ବିଷୟରେ ଅନୁଧ୍ୟାନ କରନ୍ତି ଓ ବିଭିନ୍ନ ପ୍ରାଣୀର କଙ୍କାଳ, ଡିମ୍ବ ପ୍ରଭୃତି ସଂଗ୍ରହ କରି ନିଜ ପାଖରେ ସାଇତି ରଖି ଥାଆନ୍ତି । ଏକଦା ତାଙ୍କର ସହାଧ୍ୟାୟୀ ଛାତ୍ରମାନେ ବିଦ୍ୟାଳୟର ପରିଚାଳକଙ୍କ ସମ୍ମୁଖରେ ଅଭିଯୋଗ କଲେ ଯେ ଜେନର୍ ତାଙ୍କର ଶଯ୍ୟା ନିକଟରେ ସାପକାତି, ପକ୍ଷୀବସା ଓ ପ୍ରାଣୀମାନଙ୍କର କଙ୍କାଳ ସବୁ ରଖିଛନ୍ତି ।

ଫଳତଃ ବଡ଼ ଦୁର୍ଗନ୍ଧ ହେଉଛି । ପରିଚାଳକ ଜେନର୍‌ଙ୍କୁ ଏ ସମ୍ବନ୍ଧରେ କୈଫିୟତ ମାଗିଥିଲେ, କିନ୍ତୁ ଜେନର୍‌ଙ୍କର ନିର୍ଭୀକ ଉତ୍ତର ଓ ପ୍ରକୃତିର ଜୀବଜନ୍ତୁଙ୍କ ବିଷୟରେ ଜାଣିବାର ଅତ୍ୟନ୍ତ ଆଗ୍ରହ ହେତୁ ସେ ଜେନର୍‌ଙ୍କୁ କହିଲେ, "ଜେନର୍ ! ତୁମର ସଂଗୃହୀତ ଜିନିଷମାନ ଜାଦୁଘରେ ରଖିଦିଅ ।"

ଏଠାରୁ ଶିକ୍ଷା ସମାପ୍ତ କରି ଏଡ୍‌ଓ୍ୱାର୍ଡ୍, ଜନ୍ ହଣ୍ଟରଙ୍କ ତତ୍ତ୍ୱାବଧାନରେ ଲଣ୍ଡନରେ ଡାକ୍ତରୀ ବିଦ୍ୟା ଅଧ୍ୟୟନ କଲେ । ସେଣ୍ଟଜର୍ଜ ହାସ୍‌ପାତାଳରେ ଜନ୍ ହଣ୍ଟର୍‌ଙ୍କର ଅସ୍ତ୍ରଚିକିତ୍ସାର କୌଶଳ ପ୍ରତି ଜେନର୍ ଖୁବ୍ ଲକ୍ଷ୍ୟ ରଖୁଥିଲେ ଏବଂ ନିଜ କର୍ତ୍ତବ୍ୟରେ ମଧ୍ୟ ହେଳା କରୁ ନ ଥିଲେ । ଡାକ୍ତରୀ ଚିକିତ୍ସାରେ ମନୋନିବେଶ କରିଥିଲେ ମଧ୍ୟ ଜେନର୍ ଜୀବଜନ୍ତୁଙ୍କ ପ୍ରତି ବିଶେଷ ଧ୍ୟାନ ଦେଉଥିଲେ । ଏ ଦିଗରେ ହଣ୍ଟର୍ ମଧ୍ୟ ଜେନର୍‌ଙ୍କୁ ସାହାଯ୍ୟ କରିଥିଲେ । ବ୍ୟାଙ୍କ୍ କପ୍ତାନ କୁକ୍‌ଙ୍କର ସହକର୍ମୀ ଥିଲେ । ଜେନର୍‌ଙ୍କର ଏହି ସମୟରେ ବ୍ୟାଙ୍କ୍‌ଙ୍କ ସହିତ ସାକ୍ଷାତ ହୋଇଥିଲା । ବ୍ୟାଙ୍କ୍ ଜଣେ ପ୍ରକୃତିବିତ୍‌ଙ୍କୁ ଆବଶ୍ୟକ କରୁଥିଲେ । ହଣ୍ଟର୍‌ଙ୍କର ଉପଦେଶାନୁସାରେ ଜେନର ବ୍ୟାଙ୍କ୍‌ଙ୍କ ଦ୍ୱାରା ସଂଗୃହୀତ ପ୍ରାକୃତିକ ପଦାର୍ଥର ଦାୟିତ୍ୱ ବହନ କଲେ ଏବଂ ସେଗୁଡ଼ିକୁ ଉତ୍ତମରୂପେ ସଜାଡ଼ି ଦେଲେ । ତାଙ୍କର ଏତାଦୃଶ କାର୍ଯ୍ୟ ଦେଖି ବ୍ୟାଙ୍କ୍ ଜେନର୍‌ଙ୍କୁ ନିଜ ସଙ୍ଗେ ସମୁଦ୍ରଯାତ୍ରାରେ ନେବାକୁ ସ୍ଥିର କଲେ । କିନ୍ତୁ ଏଡ୍‌ଓ୍ୱାର୍ଡ୍ ଏଥିରେ ରାଜି ନ ହୋଇ ନିଜ ଜନ୍ମସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ । ଲଣ୍ଡନ ଛାଡ଼ି ନ ଯିବାକୁ ଅନେକ ବନ୍ଧୁ ଜେନର୍‌ଙ୍କୁ ଉପଦେଶ ଦେଲେ ଏବଂ କେତେକ ବନ୍ଧୁ ମଧ୍ୟ ତାଙ୍କର ଭବିଷ୍ୟତ ଉଜ୍ଜ୍ୱଳ ହେବ ଭାବି କପ୍ତାନ କୁକ୍‌ଙ୍କ ସହକର୍ମୀ ହେବାକୁ ଅନୁରୋଧ କରିଥିଲେ । କିନ୍ତୁ ନଗରର କୋଳାହଳ ଓ ସୌନ୍ଦର୍ଯ୍ୟ ତାଙ୍କ ମନକୁ ଆକୃଷ୍ଟ କରି ପାରିଲା

ନାହିଁ କମ୍ବା ଅର୍ଥ ତାଙ୍କୁ ପ୍ରଲୋଭିତ କରିପାରିଲା ନାହିଁ । ମାତ୍ର ଗ୍ରାମର ଛବି ତାଙ୍କର ମାନସପଟରେ ବାରମ୍ବାର ପ୍ରତିବିମ୍ବିତ ହେବାକୁ ଲାଗିଲା ।

ନିଜ ସ୍ଥାନରେ ସେ ଡାକ୍ତରୀ କାର୍ଯ୍ୟ ଆରମ୍ଭ କରିଦେଲେ । ରୋଗୀର ସେବା ଶୁଶ୍ରୂଷା କରିବା ଓ ତାହାପାଇଁ ଉପଯୁକ୍ତ ଔଷଧ ବ୍ୟବସ୍ଥା କରିବାରେ ସେ ପଶ୍ଚାଦ୍‌ପଦ ହେଉ ନ ଥିଲେ । ଯେକୌଣସି ସ୍ଥାନରେ ସଂକ୍ରାମକ ରୋଗ ହେଲେ କମ୍ବା କୌଣସି ଲୋକ ରୋଗାକ୍ରାନ୍ତ ହୋଇଥିବାର ଖବର ପାଇଲେ, ସେ ସଙ୍ଗେ ସଙ୍ଗେ ସେଠାକୁ ଯାଇ ତାର ଉପଯୁକ୍ତ ବ୍ୟବସ୍ଥା କରି ଦେଉଥିଲେ । ଜେନରଙ୍କ ସୁନାମ ଦିନୁ ଦିନ ବଢ଼ି ଚାଲିଲା । ଏହି ସମୟରେ ଜନ୍ ହଣ୍ଟର୍ ତାଙ୍କୁ ବାରମ୍ବାର ପଶୁପକ୍ଷୀଙ୍କ ବିଷୟରେ ଖବର ଯୋଗାଇବା ନିମନ୍ତେ ଚିଠିପତ୍ର ପଠାଉଥିଲେ । ଏଡ୍‌ୱାର୍ଡ ହଣ୍ଟର୍‌ଙ୍କ ସମସ୍ତ ଅନୁରୋଧ ଅକୁଣ୍ଠିତ ଚିତ୍ତରେ ବହନ କରି ଦ୍ୱିଗୁଣ ଉତ୍ସାହରେ ପ୍ରକୃତି ସମ୍ବନ୍ଧରେ ଇତିହାସ ସଂଗ୍ରହ କରିବାକୁ ଲାଗିପଡ଼ିଥିଲେ । ତାଙ୍କର କୋଇଲି ବିଷୟରେ ଅନୁଧ୍ୟାନ ଅତୀବ ଆଶ୍ଚର୍ଯ୍ୟଜନକ । କୋଇଲି କପରି ଡିମ୍ବ ଦିଏ, କେଉଁଠାରେ ଡିମ୍ବରୁ ଛୁଆ ବାହାରେ ଇତ୍ୟାଦି ବିଷୟରେ ଜାଣିବା ନିମନ୍ତେ ସେ ତାଙ୍କର ଅନେକସମୟ ବ୍ୟୟ କରୁଥିଲେ । ସେ ବିଭିନ୍ନ ସ୍ଥାନରେ ବୁଦାମାନ ନିର୍ମାଣ କରି ବୁଦା ଉହାଡ଼ରେ ଲୁଚି କୋଇଲିର ଡିମ୍ବ ପାରିବାଠାରୁ ଆରମ୍ଭକରି ଛୁଆଟି ବଡ଼ ହେବା ପର୍ଯ୍ୟନ୍ତ ସମସ୍ତ ବିଷୟ ଲକ୍ଷ୍ୟ କରୁଥାନ୍ତି । କୋଇଲି ବିଷୟରେ ସେ ନିମ୍ନଲିଖିତ ବିଷୟବସ୍ତୁ ପ୍ରକାଶ କରିଥିଲେ :—

ଉଷ୍ଣ ଅଞ୍ଚଳ ତ୍ୟାଗକରି କୋଇଲି ଏପ୍ରିଲ ମାସରେ ଗ୍ରେଟ୍ ବ୍ରିଟେନରେ ପହଞ୍ଚେ । ପ୍ରଥମେ ପୁରୁଷ କୋଇଲି ପହଞ୍ଚେ । ଏହାର ରବ ସ୍ତ୍ରୀ କୋଇଲିକୁ ଆକୃଷ୍ଟ କରେ । ପ୍ରାୟ 'ମେ' ମାସ ବେଳକୁ

ସ୍ତ୍ରୀ କୋଇଲି ଡିମ୍ବ ଦିଏ । ଡିମ୍ବ ରଖିବା ପାଇଁ ସେ ଅନ୍ୟ ପକ୍ଷୀର ବସା ଖୋଜେ । ଅନ୍ୟ ଏକ ପକ୍ଷୀ (Hedge-Sparrow) ବସା ନିର୍ମାଣ କରି ଡିମ୍ବଦେଇ ଉଡ଼ିଗଲା ପରେ ସ୍ତ୍ରୀ କୋଇଲି ତାହାର ବଡ଼ ଡିମ୍ବଟିକୁ ସେହି ବସା ଉପରେ ରଖିଦେଇ ଚାଲିଯାଏ । କୋଇଲି ଡିମ୍ବଟି ଫାଟି ଦୁଇଦିନର ହେଲାବେଳେ ଛୁଆଟିର ପିଠି କୁଣ୍ଡାଇ ହୁଏ, ଶାବକଟି ପୃଷ୍ଠର ଉତ୍ତେଜନାକୁ ବନ୍ଦ କରିବା ନିମିତ୍ତ ଇଚ୍ଛା କରେ । ତାହାର ପିଠିଟି ଖାଲୁଆ ହୋଇଥାଏ । ସେ ଅନ୍ୟ ପକ୍ଷୀର ଡିମ୍ବକୁ ନିଜର ଡେଣା ସାହାଯ୍ୟରେ ପିଠି ମଧ୍ୟରେ ରଖି ପରେ ପରେ ତାହାକୁ ବସା ବାହାରକୁ ଫିଙ୍ଗିଦିଏ । ଏହିପରି ଥରକୁଥର କରିବା ଦ୍ୱାରା ସେ ସମସ୍ତ ଡିମ୍ବଗୁଡ଼ିକ ଫିଙ୍ଗିଦିଏ । ପରୀକ୍ଷା ସ୍ୱରୂପ ଜେନର୍ ଆଉ ଗୁଡ଼ିଏ ଡିମ୍ବ ବସା ମଧ୍ୟରେ ରଖିବାରୁ ପୁନର୍ବାର କୋଇଲି ଛୁଆଟି ଏହି ଡିମ୍ବଗୁଡ଼ିକୁ ପୂର୍ବପରି ଫିଙ୍ଗିଦେଲା ।

ଏଡ୍‌ୱାର୍ଡ ଜେନର୍ ଏହି ତଥ୍ୟକୁ ହଣ୍ଟର୍‌ଙ୍କ ନିକଟକୁ ପଠାଇଲେ । ହଣ୍ଟର ଏହାକୁ ଇଂଲଣ୍ଡର ରୟେଲ ସୋସାଇଟିକୁ ପଠାଇଲେ । ସୋସାଇଟିର ସଭ୍ୟମାନେ ଏହି ତଥ୍ୟକୁ ଅସମ୍ଭବ ମନେକରି ଗ୍ରହଣ କଲେ ନାହିଁ । ସେମାନଙ୍କ ମତରେ ଜଣେ ଗାଉଁଲି ଡାକ୍ତର ପକ୍ଷରେ ଏପରି ଗବେଷଣା ନିତାନ୍ତ ଅସମ୍ଭବ ଏବଂ କୋଇଲି ଛୁଆ ଅନ୍ୟ ପକ୍ଷୀର ଡିମ୍ବକୁ ବାହାର କରିଦେବା ଭ୍ରମ ମାତ୍ର । ଦୁଃଖର କଥା, ସଭ୍ୟମାନଙ୍କର ଏଭଳି ମତାମତ ଯୋଗୁଁ ଜେନର୍‌ଙ୍କ ତଥ୍ୟ ପ୍ରକାଶିତ ହୋଇ ପାରିଲା ନାହିଁ କିନ୍ତୁ ବହୁବର୍ଷ ପରେ ଏହି ତଥ୍ୟର ସତ୍ୟତା ବୈଜ୍ଞାନିକମାନେ ପ୍ରମାଣ କରିଥିଲେ ଏବଂ ପରେ ରୟେଲ ସୋସାଇଟି ତାଙ୍କର ଭୁଲ ବୁଝିପାରି ଅନୁତାପ କରିଥିଲେ ।

ଜେନର୍ ପ୍ରକୃତି ବିଷୟରେ ମନୋନିବେଶ କରିଥିଲେ ମଧ୍ୟ ରୋଗୀ ଚିକିତ୍ସାରେ ହେଳା କରୁ ନ ଥିଲେ । ସେ ପ୍ରତ୍ୟହ ଘୋଡ଼ାରେ

ଚଢ଼ି ରୋଗୀ ଦେଖି ଆସନ୍ତି । ଦିନକର ଘଟଣା । ସେଦିନ ବର୍କ୍ଲେରେ ଏକ "ମେଳା" ହେଉଥାଏ । ଜେନର୍ ନିଜ କର୍ତ୍ତବ୍ୟରେ ବାହାରି ଯାଇଛନ୍ତି । ଏହି ସମୟରେ ଗୋଟିଏ ପିଲା ମେଳା ଦେଖିବାକୁ ଦୌଡ଼ୁଛି । ପିଲାଟିକୁ ନିକଟ ହେବାର ଦେଖି ଜେନର୍ ଘୋଡ଼ାଟିକୁ ଅଟକାଇ ଦେଲେ, କିନ୍ତୁ ପିଲାଟି ନିଜର ଗତିରୋଧ କରି ନ ପାରି ପଡ଼ିଗଲା । ଜେନର୍ ସଙ୍ଗେ ସଙ୍ଗେ ଘୋଡ଼ାରୁ ଓହ୍ଲାଇ ପିଲାଟିର ଶୁଶ୍ରୂଷା କଲେ । ପିଲାଟିର ମାତା ବିକଳରେ ଜେନର୍‌ଙ୍କୁ ପୁଅର କଣ ହୋଇଛି ବୋଲି ପଚାରିଲେ । ଜେନର୍ ତାଙ୍କୁ ଆଶ୍ୱାସନା ଦେଇ କହିଲେ, "ପିଲାଟିର ବିଶେଷ କିଛି କ୍ଷତ ହୋଇନାହିଁ । ଦିନେ ଦୁଇ-ଦିନ ମଧ୍ୟରେ ପିଲାଟି ଚାଲିବାକୁ ସମର୍ଥ ହେବ ।" ଏହା ଶୁଣି ବାଳକ ଜେମ୍‌ସ ଡାକ୍ତରଙ୍କୁ ପଚାରିଲା, "ଡାକ୍ତର ! ମୁଁ କଣ ତେବେ ମେଳା ଦେଖି ଯାଇ ପାରିବି ନାହିଁ ?" ପିଲାଟିର ଆଗ୍ରହ ଦେଖି ଜେନର୍ ତାକୁ ଘୋଡ଼ା ପିଠିରେ ବସାଇ ମେଳା ଦେଖାଇଲେ ଏବଂ ପରେ ତାକୁ ତାର ଘରେ ଛାଡ଼ିଦେଇ ଆସିଲେ । ସେ ପ୍ରତିଦିନ ପିଲାଟିର ଅବସ୍ଥା ଦେଖିବା ନିମନ୍ତେ ପିଲାଟିର ନିକଟକୁ ଆସୁଥାନ୍ତି, ଫଳରେ ବାଳକ ଜେମ୍‌ସ ଓ ଡାକ୍ତର ଜେନର୍‌ଙ୍କ ମଧ୍ୟରେ ସ୍ନେହ ମମତା ଦିନୁଦିନ ବଢ଼ି ଚାଲିଲା । ଏହି ପିଲାଟି ଜେନର୍‌ଙ୍କର ଉଜ୍ଜ୍ୱଳ ଭବିଷ୍ୟତର କାରଣ ହୋଇଥିଲା ।

ବର୍କ୍ଲେ ସହରରେ ବସନ୍ତ ବ୍ୟାପିଛି । ଡାକ୍ତର କବିରାଜ ଲାଗିଛନ୍ତି । ବସନ୍ତ ଟୀକା ଦିଆ ଚାଲିଛି । ବସନ୍ତ କମୁ ନାହିଁ, ଡାକ୍ତରମାନେ ହତାଶ ଓ ଜେନର୍ ବଡ ଚିନ୍ତିତ ।

ଦିନକର ଘଟଣା । ଗୋଟିଏ ଗଉଡ଼ୁଣୀ ଡାକ୍ତର ଜେନର୍‌ଙ୍କ ପାଖକୁ ଆସି କହିଲା, "ଡାକ୍ତରବାବୁ ! ମୋ ହାତରେ କଣ ବାହାରିଛି ଦେଖିଲେ ?" ଜେନର୍ ଉତ୍ତମରୂପେ ପରୀକ୍ଷା କରି

କହିଲେ, "ଏ ଗୋବସନ୍ତ, ମାରାତ୍ମକ ନୁହେଁ । ମୁଁ ଗୋଟାଏ ମଲମ ଦେବି, ସେଥିରେ ଦିନେ ଦୁଇଦିନ ମଧ୍ୟରେ ଏହା ଭଲ ହୋଇଯିବ ।" ଗଉଡ଼ୁଣୀ ଆଶ୍ୱସ୍ତ ହୋଇ କହିଲା, "ମୁଁ ବସନ୍ତ ବୋଲି ଭୟ କରୁଥିଲି ।" ଡାକ୍ତର କହିଲେ, "ତୁମ୍ଭେମାନେ ସର୍ବଦା ଗାଈମାନଙ୍କ ସହ ଚଳପ୍ରଚଳ ହୁଅ କି'ନା ଏଣୁ ଗୋବସନ୍ତ ତୁମ୍ଭମାନଙ୍କଠାରେ ଦେଖା ଯାଉଅଛି ।" ଗଉଡ଼ୁଣୀଟି କହିଲା, "ହଁ, ଆମେମାନେ ଗୋ-ବସନ୍ତରେ ଆକ୍ରାନ୍ତ ହେଉ ବୋଲି ତ ଆମକୁ ବସନ୍ତ ହୁଏନାହିଁ ।" ଗଉଡ଼ୁଣୀର ଏହି କଥା ଶୁଣି ସେ କିଛି ସମୟ ଚିନ୍ତିତ ଓ ସ୍ତବ୍ଧ ହୋଇ ରହିଲେ । କଥାଟା କିପରି ତାଙ୍କୁ ଚିନ୍ତାରେ ଅଭିଭୂତ କରି ପକାଇଲା । ତାଙ୍କର ମନେ ହେଲା ଯେ ସେ ଏପରି କଥା ଅନ୍ୟଏକ ଗଉଡ଼ୁଣୀ ଠାରୁ ପୂର୍ବରୁ ଶୁଣିଥିଲେ । କିନ୍ତୁ ସେତେବେଳେ ସେ କଥାରେ ବିଶେଷ ଗୁରୁତ୍ୱ ଦେଇ ନ ଥିଲେ । ବର୍ତ୍ତମାନ ତାଙ୍କ ମନରେ ସେହି କଥା,"ଗୋ-ବସନ୍ତ ହେଲେ ବସନ୍ତ ହୁଏ ନାହିଁ" କି ସୁପ୍ତ କି ଜାଗ୍ରତ ସବୁ ଅବସ୍ଥାରେ ତାଙ୍କୁ ବ୍ୟସ୍ତ କରି ପକାଇଲା । ସେ ମନେ ମନେ ଭାବିଲେ ଯେ ଏଭଳି ମଫସଲ କଥାରେ କଣ କିଛି ମୂଲ୍ୟ ନାହିଁ ? କାହିଁ ଗଉଡ଼ୁଣୀମାନଙ୍କ ଦେହରେ ତ ବସନ୍ତର ଦାଗ ଦେଖା ଯାଉନାହିଁ । ସେମାନଙ୍କ ଚେହେରା ତ ଖୁବ୍ ସୁନ୍ଦର । ଏମାନଙ୍କୁ କଣ ତା ହେଲେ ବସନ୍ତ ହୁଏ ନାହିଁ ? ଏସବୁ ଭାବି (ସେ) ସ୍ଥିର କଲେ ଯେ ଲୋକଙ୍କ ଦେହରେ ଯଦି ବସନ୍ତ ଜୀବାଣୁ ପ୍ରବେଶ କରା ନ ଯାଇ ଗୋ-ବସନ୍ତର ଜୀବାଣୁ ପ୍ରବେଶ କରି ଦିଆ ଯାଆନ୍ତା, ତା ହେଲେ ଲୋକେ ଏହି ମାରାତ୍ମକ ରୋଗରୁ ରକ୍ଷା ପାଆନ୍ତେ । ଏହି ସିଦ୍ଧାନ୍ତକୁ ସେ ତାଙ୍କର ସଙ୍ଗୀ ଡାକ୍ତରମାନଙ୍କୁ ଜଣାଇ ଦେବାକୁ ସ୍ଥିର କଲେ ।

× × × ×

ଚନ୍ଦ୍ରାଲୋକରେ ଫ୍ଲିସ୍‌ର ଧର୍ମଶାଳାରେ ଡାକ୍ତରମାନଙ୍କର ଖୁସି ଗପ ଚାଲିଛି । ଏହି ସମୟରେ ଡାକ୍ତର ଜେନର୍ ତାଙ୍କର ସିଦ୍ଧାନ୍ତ ସମସ୍ତଙ୍କ ସମକ୍ଷରେ ପ୍ରକାଶ କଲେ । ସମସ୍ତେ ଏହା ଶୁଣି ଖୁବ୍ ହସିଲେ ଏବଂ ଜେନରଙ୍କୁ ନାନା ପ୍ରକାର ଥଟ୍ଟା ତାମସା କରି ଆନନ୍ଦ ଅନୁଭବ କଲେ । କିନ୍ତୁ ଜେନର୍ ଏଥିରେ ବିବ୍ରତ ହେଲେ ନାହିଁ । ଶେଷରେ ଡାକ୍ତର ଫ୍ୟାସି ଜେନର୍‌ଙ୍କୁ କହିଲେ,"ଜେନର୍ ! ତେବେ କଣ ଟୀକାରେ ତୁମର ବିଶ୍ୱାସ ନାହିଁ ।" ଜେନର୍ କହିଲେ,"ମୋର ପୂର୍ଣ୍ଣ ବିଶ୍ୱାସ ଅଛି । କିନ୍ତୁ ଏହି ବସନ୍ତ ଟୀକାରେ ନୁହେଁ । ବସନ୍ତ ଟୀକା ଦେବା ଅର୍ଥ ଲୋକଙ୍କ ଦେହରେ ବିଷ ପ୍ରୟୋଗ କରିବା ।" ଫ୍ୟାସି (ଉତ୍ତେଜିତ ହୋଇ) କହିଲେ,"ତା ହେଲେ କଣ ତୁମେ କହୁଛ ଆଜିଯାଏଁ ଡାକ୍ତରମାନେ ରୋଗୀକୁ ମାରିବାପାଇଁ ଲାଗି ପଡ଼ିଛନ୍ତି ?" ଜେନର୍ କହିଲେ,"ନାଁ, ମୁଁ ତାହା କହୁନାହିଁ । ଯେଉଁ ପଦ୍ଧତି ଆମେ ଅନୁସରଣ କରୁଛେ, ତାହା ଭୁଲ୍ । ମୁଁ ଏହା ମୋର ଅନୁଭୂତିରୁ ଜାଣି ପାରୁଛି । ଯଦି ବସନ୍ତ ଟୀକା ଦ୍ୱାରା ବସନ୍ତରୁ ମୁକ୍ତି ମିଳୁଥାନ୍ତା, ତାହାହେଲେ, ଏତେ ଲୋକ ମରନ୍ତେ କାହିଁକି ? ଆପଣ କଣ ବିଶ୍ୱାସ କରିବେ'ନି ଯେ ଗଉଡୁଣୀମାନେ ପ୍ରାୟ ବସନ୍ତରେ ଆକ୍ରାନ୍ତ ହୁଅନ୍ତି ନାହିଁ ?"

ଫ୍ୟାସି କହିଲେ, "ଦେଖନ୍ତୁ, ଡାକ୍ତର ଜେନର୍ ଆମକୁ ଗାଈ କରିଦେବେ । ଏଡ଼୍‌ୱାର୍ଡ଼୍ ଔଷଧ ପ୍ରତି ବିଶେଷ ଧ୍ୟାନ ନ ଦେଇ ଗାଈ ବିଷୟରେ ବିଶେଷ ଧ୍ୟାନ ଦେଇଛନ୍ତି ।" ଗମ୍ଭୀର ଭାବରେ ଜେନର୍ ସମସ୍ତ କଥା ଶୁଣୁଥାନ୍ତି । ସେ ଏଥିରୁ ହଟିଯିବା ଲୋକ ନୁହନ୍ତି । ସେ ତାଙ୍କ ସିଦ୍ଧାନ୍ତରେ ଦୃଢ଼ । କିଛି ସମୟ ପରେ ଫ୍ୟାସି ଆହ୍ୱାନ-କରି କହିଲେ, "ଜେନର୍ ! ତୁମର ଯଦି ଗୋ-ବସନ୍ତରେ ବିଶ୍ୱାସ ଥାଏ, ତେବେ ତୁମର ତଥ୍ୟର ଉପଯୁକ୍ତ ପ୍ରମାଣ ଦିଅ ।" ଜେନରଙ୍କୁ

କିଛି ସମୟ ଭାବ କହିଲେ, "ହେଉ" । ବର୍ତ୍ତମାନ ଜେନର୍‌ଙ୍କ ଉପରେ ଗୋଟାଏ ବିରାଟ ଭାର ପଡ଼ିଗଲା । ତାଙ୍କୁ ବନ୍ଧୁଙ୍କ ଆହ୍ୱାନର ସମୁଚିତ ଉତ୍ତର ଦେବାକୁ ହେବ । ସେଦିନ ଏତିକରେ କଥୋପ-କଥନ ଶେଷ ହେଲା । ସମସ୍ତେ ସ୍ୱ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ବାଟରେ ଜେନର୍‌ଙ୍କର ବନ୍ଧୁ ଗାର୍ଡ଼ନର୍ ଜେନର୍‌ଙ୍କୁ ଏଭଳି ଦୁଃସାହ-ସିକ କାର୍ଯ୍ୟରୁ ନିବୃତ୍ତ ରହିବାକୁ ଅନୁରୋଧ କଲେ । ସେ କହିଲେ, "ଜେନର୍ ! ତୁମେ କଣ ଭାବି ପାରୁନାହିଁ ଯେ ତୁମର ପରୀକ୍ଷାରେ ରୋଗୀ ଯଦି ମରେ ତେବେ କି ବିପଦ ଅଛି ! ଲୋକେ ତୁମର ତଥ୍ୟ ବିଷୟରେ କିଛି ନବୁଝି ତୁମକୁ ଦୋଷୀ ସାବ୍ୟସ୍ତ କରିବେ ଏବଂ ତୁମର ସମସ୍ତ ସୁନାମ ତୁମେ ହରେଇ ବସିବ । ଜେନର୍ କହିଲେ, "ମୁଁ ତାହା ଭଲଭାବରେ ଜାଣିଅଛି । ମୋର ସୁନାମ ପ୍ରତି ତିଳେ ଖାତିର ନାହିଁ । ଲୋକେ ଭଲ ମନ୍ଦ ଯାହା କହନ୍ତୁ ନା କାହିଁକି, ମୁଁ ଯଦି ବିଶ୍ୱବାସୀଙ୍କର କିଛି ଉପକାର କରିପାରିବାରେ ସମର୍ଥ ହୁଏ, ତେବେ ସେତିକି ମୋର ଯଥେଷ୍ଟ ହେବ ।" ଗାର୍ଡ଼ନର୍ ଜେନର୍‌ଙ୍କର ଦୃଢ଼ତା ବୁଝିପାରି ଅଧିକ କିଛି କହିଲେ ନାହିଁ ।

× × × ×

ସିନ୍ଦୁର ଫାଟିନି । ଜଗତ ସୁପ୍ତ । ଏଡ୍‌ଓ୍ୱାର୍ଡ ହଠାତ୍ ଶଯ୍ୟା ତ୍ୟାଗକରି ଉଠି ପଡ଼ିଲେ; ନିଜ ପୁତୁରା ଫିପ୍‌ସକୁ ଉଠାଇ ଡକାଇଲେ । ପୁତୁରା ହଠାତ୍ ଦାଦାଙ୍କୁ ଦେଖି ଚମକି ପଡ଼ିଲା । ଫିପ୍‌ସ ତାଙ୍କୁ କିଛି କହିବା ପୂର୍ବରୁ ଏଡ୍‌ଓ୍ୱାର୍ଡ଼ ତାକୁ କହିଲେ, "ଫିପ୍‌ସ ! ତୁ ତୋର କାଗଜ ପେନ୍‌ସିଲ୍ ଧରି ଆ । ସବୁଠାରୁ ଛବିଟା ଆଙ୍କି ନେବ ।" ଫିପ୍‌ସ ଗୋଟାଏ ଯୁବତୀ ଗଉଡ଼ୁଣୀର ଛବି ଆଙ୍କିବାଟାକୁ ପସନ୍ଦ ନ କରି କହିଲେ, "ଦାଦା ! ତାର ଫଟୋ ଆଙ୍କିବାରେ ଲାଭ କ'ଣ ?"

ଜେନର୍ କହିଲେ, "ନା, ନା, ତାର ହାତର ଫଟୋଟା କେବଳ ଦରକାର।" ଦାଦା ପୁତୁରା ଦୁଇଜଣ ଗଲେ। କିଛି ସମୟ ପରେ ସରାହ ପାଖରେ ପହଞ୍ଚିଲେ।

ଜେନର୍—ସରାହ ! ଭଲ ଅଛ ତ ?

ସରାହ—ହଁ, ଏକ ପ୍ରକାର ଅଛି।

ଜେନର୍—କାହିଁ, ତୋର ହାତଟା ଦେଖି ? ସରାହ ହାତଟା ବଢ଼ାଇ ଦେଲା। ସରାହର ହାତଧରି ଜେନର୍ ପୁତୁରାକୁ ହାତର ସଠିକ୍ ଫଟୋ ଆଙ୍କିବାକୁ କହିଲେ। ଫିପ୍ସି ହାତର ଓ ଘା'ଗୁଡ଼ିକର ଛବି ଅତି ଯତ୍ନ ସହକାରେ ଉଠାଇ ନେଲେ।

ଜେନର୍—ଏହି ଫୋଟକାରୁ ପୂଜ ଦେବା ପାଇଁ ବୋଧହୁଏ ତୁମେ ଯନ୍ତ୍ରଣାଗ୍ରସ୍ତ ହେବ ନାହିଁ ସରାହ ! ମୁଁ ଖୁବ୍ ଧୀରେ ଏଥିରୁ ପୂଜ ବାହାର କରିନେବି। ଡାକ୍ତରଙ୍କ ଅନୁରୋଧ ଯୋଗୁଁ ସରାହ ତାର ସମ୍ମତି ଜଣାଇଲା। ଜେନର୍ ଖୁବ୍ ସାବଧାନତା ସହ ପିଚକିରି ଦ୍ୱାରା କିଛି ତରଳ ପଦାର୍ଥ ହାତର ଘାଆରୁ ବାହାର କରିନେଲେ। ଏହା ହେଲା ପରୀକ୍ଷାର ବସ୍ତୁ।

× × × × ×

ଗୋ-ବସନ୍ତ ଜୀବାଣୁ ତ ସଂଗ୍ରହ କରାଗଲା, ବର୍ତ୍ତମାନ ପରୀକ୍ଷା କରାଯିବ କିପରି ! କାହାଠାରେ ବା ପରୀକ୍ଷା କରାଯିବ ! ବହୁ ଚିନ୍ତା କରି ଶେଷରେ ସେ ଜେମ୍ସଠାରେ ପରୀକ୍ଷା କରିବେ ବୋଲି ସିଦ୍ଧାନ୍ତ କଲେ। ଜେମ୍ସ ଏଥିରେ ବାଧା ଦେଲା ନାହିଁ।

× × × × ×

୧୭୯୬ ମସିହା "ମେ" ଚଉଦ ତାରିଖ ଦିନ ପରୀକ୍ଷା ଆରମ୍ଭ ହେଲା। ଜେନର୍ ଜେମ୍ସ ହାତଧରି ଛୁରୀଦ୍ୱାରା ଅଧଇଞ୍ଚ ଲେଖାଏଁ କେତୋଟି ଗାର କାଟିଦେଲେ ଏବଂ ସେଥିରେ ନିଜ ଦ୍ୱାରା ସଂଗୃହୀତ

ତରଳ ପଦାର୍ଥ ପ୍ରୟୋଗ କଲେ । ପିଲାଟିକୁ ଆଶ୍ୱାସନା ଦେଇ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଷଷ୍ଠଦିନ ପର୍ଯ୍ୟନ୍ତ କୌଣସି ପ୍ରତିକ୍ରିୟା ଦେଖାଗଲା ନାହିଁ । ସପ୍ତମ ଦିନ ପିଲାଟିକୁ ସାମାନ୍ୟ ଖରାପ ଲାଗିଲା । କିନ୍ତୁ ନବମ ଦିନ ପିଲାଟିର କ୍ଷୁଧା ତୃଷା କିଛି ରହିଲା ନାହିଁ । ମୁଣ୍ଡ-ବ୍ୟଥା ସଙ୍ଗେ ସଙ୍ଗେ ଦେହ ବଡ଼ ଖରାପ ହୋଇଗଲା । ପରବର୍ତ୍ତୀ ଦିନମାନଙ୍କରେ ଦେହ ଆସ୍ତେ ଆସ୍ତେ ଆରୋଗ୍ୟଲାଭ କଲା । ଏ ହେଲା ପ୍ରଥମ ଭାଗରେ ଜେନର୍‌ଙ୍କ ବିଜୟ । ମାତ୍ର ଦ୍ୱିତୀୟ ଭାଗ ଯେ ଗୁରୁତ୍ୱପୂର୍ଣ୍ଣ, ପଦେ ପଦେ ବିପଦ । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଜେନର୍ କିଛି ଠିକ୍ କରିପାରୁ ନାହାନ୍ତି । ତେବେ ସେ କଣ ଏଥିରୁ ବିରତ ହେବେ ! ଜଗତବାସୀ କଣ ଚିରଦିନ ପାଇଁ ଅନ୍ଧ-କାରରେ ରହିବେ ! ସାହସ ବାନ୍ଧି ଜେନର୍ ପୁନର୍ବାର ଲାଗି ପଡ଼ିଲେ । ଜେନର୍ ଜେମ୍ସ ତଥା ତାର 'ମା'କୁ ଖୁବ୍ ବୁଝାଇଲେ । ପିଲାଟି ପରୀକ୍ଷା ନିମନ୍ତେ ସ୍ୱୀକୃତ ହେଲା । ଜେନର୍ ପିଲାଟିର ହାତକୁ ଦୁଇ ସ୍ଥାନରୁ ଚିରିଦେଇ ସେଥିରେ ବସନ୍ତ ଜୀବାଣୁ ପ୍ରବେଶ କରା-ଇଲେ । ପିଲାଟିର ଅବସ୍ଥା ଦେଖିବା ନିମନ୍ତେ ସେ ପ୍ରତି ଦୁଇ ଘଣ୍ଟା ଘଣ୍ଟାରେ ଆସନ୍ତି ଓ ପରୀକ୍ଷା କରି ଯାଆନ୍ତି । ଏହିପରି କେତେଦିନ ଗଲା । କିଛି ତ ପ୍ରତିକ୍ରିୟା ଦେଖାଗଲାନି ! କାହିଁ ବସନ୍ତର ତ ଲେଶ-ମାତ୍ର ଚିହ୍ନ ନାହିଁ ! ତା ହେଲେ ତାଙ୍କ ପରୀକ୍ଷା କଣ ସଫଳ ହୋଇଛି ! ଜେନର୍ କଣ ନୂତନ ଆଲୋକର ସନ୍ଧାନ ପାଇଛନ୍ତି !

× × × × ×

ଜେନର୍‌ଙ୍କ ଆନନ୍ଦ କହିଲେ ନ ସରେ । ତାଙ୍କର ପରୀକ୍ଷା ଜଣାଇବା ନିମନ୍ତେ ସେ ଧର୍ମଶାଳାକୁ ବାହାରିଲେ ! ଜେନର୍‌ଙ୍କ ପୂର୍ବ ଅନୁପସ୍ଥିତି ବନ୍ଧୁମାନଙ୍କର ସନ୍ଦେହର କାରଣ ହୋଇଥିଲା । ବନ୍ଧୁମାନଙ୍କ ସମ୍ମୁଖରେ ଜେନର୍ ତାଙ୍କର ପରୀକ୍ଷା ପ୍ରାଞ୍ଜଳ ଭାବରେ

ବର୍ଣ୍ଣନା କଲେ । ଏଥିରେ ସମସ୍ତେ ମୁଗ୍ଧ ହୋଇ ତାଙ୍କର କର ମର୍ଦ୍ଦନ କରିଲେ । କିନ୍ତୁ ଡାକ୍ତର ପ୍ୟାଗ୍ଟ କହିଲେ, "ଜେନର୍ ! ତୁମେ କଣ ଭାବୁଛ, ତୁମ କଥା ଲଣ୍ଡନର କୌଣସି ଡାକ୍ତର ଗ୍ରହଣ କରିବେ । ସମସ୍ତେ ଗାଇଁଲ ଡାକ୍ତରଟା କଣ କରିପାରିବ ବୋଲି କହିବେ । ସମସ୍ତେ ତ ବସନ୍ତ ଟୀକାରେ ବିଶ୍ୱାସ କରନ୍ତି । ତୁମ କଥା ବିଶ୍ୱାସ କରିବେ କିପରି ? ତୁମେ ଏଥିରୁ ବିରତ ରହ ।"

ଜେନର୍ କହିଲେ, "ନା, ମୁଁ ମୋର ତଥ୍ୟକୁ ବିଶ୍ୱବାସୀଙ୍କୁ ଜଣାଇବି । ସେମାନେ ଗ୍ରହଣ କରନ୍ତୁ ବା ନ କରନ୍ତୁ, କିନ୍ତୁ ମୁଁ ସମସ୍ତଙ୍କ ସମ୍ମୁଖରେ ମୋର ତଥ୍ୟର ପ୍ରଚାର କରିବି । ମୋର ସାଧ୍ୟାନୁସାରୀ ସମସ୍ତଙ୍କୁ ବୁଝାଇବି ।"

ଗାର୍ଡ୍ନର କହିଲେ, "ତୁମେ ତୁମର ତଥ୍ୟକୁ ରୟେଲ ସୋସାଇଟିକୁ ପଠାଇଦିଅ । ସେଠି ତୁମର ତଥ୍ୟର ବିଚାର ହେବ । ତୁମର ତଥ୍ୟ ସାରା ଜଗତ ଜାଣୁ ।"

ଜେନର୍ କହିଲେ, "ନା, ମୁଁ ରୟେଲ ସୋସାଇଟିକୁ ପଠାଇବି ନାହିଁ । ତୁମେ କଣ ଜାଣନାହିଁ, ମୁଁ କୋଇଲି ବିଷୟରେ ଦେଇଥିବା ତଥ୍ୟକୁ ରୟେଲ ସୋସାଇଟି କିପରି ହେୟଜ୍ଞାନ କଲେ ।"

ଅନ୍ୟ ଡାକ୍ତର କହିଲେ, "ତା ହେଲେ ଜେନର୍ ତୁମେ କଣ କରିବାକୁ ଯାଉଛ ?"

ଜେନର୍ କହିଲେ, "ମୁଁ ରାଜାଙ୍କ ନିକଟକୁ ମୋର ତଥ୍ୟର ବିବରଣୀ ଦେବି ଏବଂ ତଥ୍ୟ ସମ୍ବନ୍ଧରେ ଏକ ପାମ୍ଫଲେଟ୍ ପ୍ରକାଶ କରିବି ।" ଜେନର୍ ରାଜା ତୃତୀୟ ଜର୍ଜଙ୍କ ନିକଟକୁ ତାଙ୍କର ତଥ୍ୟ-ଟିକୁ ପଠାଇଲେ । ତାହା ଗୃହୀତ ହେଲେ ମଧ୍ୟ ଆଦୃତ ହେଲା ନାହିଁ । ଜେନର୍ ତାଙ୍କର ତଥ୍ୟଟିକୁ ପ୍ରକାଶ କରିବା ପାଇଁ ଲଣ୍ଡନ ଯାତ୍ରା କଲେ । ଲଣ୍ଡନରେ ଅବସ୍ଥାନ କାଳରେ ତାଙ୍କ ତଥ୍ୟରେ କେହି

ବିଶ୍ୱାସ କଲେ ନାହିଁ । ଏଣୁ ବିଫଳମନୋରଥ ହୋଇ ଜେନର୍ ବର୍କ୍ଲେ ଫେରିଲେ ।

ସତ୍ୟ କେବେ ଲୁଚି ରହେ ନାହିଁ; ଦିନେ ନା ଦିନେ ସ୍ୱୀକୃତ ହୁଏ । × × × ×

ଲଣ୍ଡନର ସେଣ୍ଟ ଥୋମାସ୍ ହାସ୍ପାତାଳରେ ରୋଗୀର ସଂଖ୍ୟା କମ୍ ନୁହେଁ । ଡାକ୍ତର କ୍ଲାଇନ୍ ଗୋଟିଏ ବାଳକର ଚିକିତ୍ସାରେ ବ୍ୟସ୍ତ । କେତେ ଔଷଧ ପ୍ରୟୋଗ କଲେଣି ; ମାତ୍ର ବାଳକଟିର ଅଣ୍ଠା-ରୋଗ ଭଲ ହେଉ ନାହିଁ । କଣ କରିବେ, 'କ୍ଲାଇନ୍' ଭାବିପାରୁ ନାହାନ୍ତି । କୌଣସି ଉତ୍ତେଜକ ଦ୍ରବ୍ୟ ପ୍ରୟୋଗ କରିବେ କି ? ତାଙ୍କର ମନେ ପଡ଼ିଲା ଡାକ୍ତର ଜେନର୍ଙ୍କ ବସନ୍ତ ଟୀକା କଥା । କିଛି ସ୍ଥିର କରି ନ ପାରି ସେ ଗୋ-ବସନ୍ତର ଲସା ବାଳକ ଦେହରେ ପ୍ରୟୋଗ କଲେ । କିନ୍ତୁ ରୋଗର ଉପଶମ ସୂଚନା ମିଳିଲାନ ତ ! ଏହି ସମୟରେ ଚାରିଆଡ଼େ ବସନ୍ତ ବ୍ୟାପି ଥାଏ । ଡକ୍ଟର୍ କ୍ଲାଇନ୍ ପିଲାଟିକୁ ବସନ୍ତ ଟୀକା ଦେଲେ । କି ଆଶ୍ଚର୍ଯ୍ୟଜନକ ଫଳ ! ବସନ୍ତର କୌଣସି ଚିହ୍ନ ମଧ୍ୟ ଦେଖାଗଲା ନାହିଁ । ତେବେ ଡକ୍ଟର୍ ଜେନର୍ଙ୍କ କଥା କଣ ସତ୍ୟ ! ଡକ୍ଟର ଜେନର୍ଙ୍କର ତଥ୍ୟର ସତ୍ୟତା ଉପଲବ୍ଧି କରି ଡକ୍ଟର୍ 'କ୍ଲାଇନ୍' ଓ୍ୱେଲସ୍ର ଯୁବରାଜଙ୍କ ଚିକିତ୍ସକ ସାର୍ ଓ୍ୱାଲଟର୍ଙ୍କୁ ଏ ତଥ୍ୟ ସମ୍ବନ୍ଧରେ ଜଣାଇଲେ । ସାର୍ ଓ୍ୱାଲଟର୍ ଏ କଥା ବିଶ୍ୱାସ କଲେ ନାହିଁ । ସେ କହିଲେ, "ପୃଥିବୀର ବଡ଼ ବଡ଼ ଡାକ୍ତର ଏ ଦିଗରେ ଖୁବ୍ ଚିନ୍ତା କରିଛନ୍ତି । ସେମାନେ କଣ ଏ ସିଦ୍ଧାନ୍ତରେ ପହଞ୍ଚିପାରି ନ ଥାନ୍ତେ ? ଗୋଟାଏ ଗାଉଁଲି ଡାକ୍ତରର ଏ ଗୋଟାଏ ନିର୍ବୋଧତା ମାତ୍ର ।" କ୍ଲାଇନ୍ 'ଓ୍ୱାଲ୍ଟର୍'ଙ୍କୁ ଅନୁରୋଧ କରି କହିଲେ, "ସାର୍, ଆପଣ ପରୀକ୍ଷା କରି ଦେଖନ୍ତୁ ; ମୁଁ ପରୀକ୍ଷା କରି ସଫଳତା ଲାଭ କରିଛି ।" ଓ୍ୱାଲ-

ଟର୍ ପରୀକ୍ଷା ଆରମ୍ଭ କରିଦେଲେ । ସେ ଯେତୋଟି ପରୀକ୍ଷା କଲେ ସବୁଥିରେ କୃତକାର୍ଯ୍ୟ ହେଲେ । କ୍ଲାଇନ୍ ଏବଂ ଓ୍ୱାଲଟର୍ ଜେନର୍‌ଙ୍କ ତଥ୍ୟର ସତ୍ୟତା ଉପଲବ୍ଧି କରି ତାଙ୍କ ନିକଟକୁ ପ୍ରଶଂସା ପତ୍ର ଲେଖିଲେ । ଜେନର୍‌ଙ୍କ ଗୌରବ ରବି ଉଦିତ ହେଲେ । ଗୋ-ବୀଜ ଟୀକା ସମ୍ବନ୍ଧରେ ଚାରିଆଡ଼େ ଆଲୋଚନା ଚାଲିଲା । ଧର୍ମଯାଜକଗଣ ଏହାର ତୀବ୍ର ପ୍ରତିବାଦ କଲେ । ସେମାନେ କହିଲେ, "ଈଶ୍ୱରଙ୍କର ଇଚ୍ଛା ବିରୁଦ୍ଧରେ ଏପରି କାର୍ଯ୍ୟ କରାଯାଉଅଛି । ଗୋ-ବୀଜ ଟୀକା ମନୁଷ୍ୟର ଅପମୃତ୍ୟୁ ଆଣିଦେବ । ଏହାଦ୍ୱାରା ଆମେ ଈଶ୍ୱରଙ୍କଠାରେ ଦ୍ରୋହୀ ହେବା ।" ଗୋ-ବୀଜ ଟୀକା ନାମ ଶୁଣିଲା ମାତ୍ରେକେ ସାଧାରଣ ଲୋକେ ବଡ଼ ଘୃଣା ଚକ୍ଷୁରେ ଜେନର୍‌ଙ୍କୁ ଦେଖିଲେ । ଗୋ-ବସନ୍ତ ଲସାରୁ ଟୀକା ପ୍ରସ୍ତୁତ ହେଉଥିବାରୁ ଟୀକା ନେବାକୁ କେହି ଆଗ-ଭର ହେଲେ ନାହିଁ । ପତ୍ରପତ୍ରିକା ଗୋ-ବୀଜ ଟୀକା ବିରୁଦ୍ଧରେ ଲେଖି ପତ୍ରିକା ପୂରଣ କରିବାର ସୁଯୋଗ ପାଇଲେ । ବ୍ୟଙ୍ଗ ଚିତ୍ରକର ତାଙ୍କର ଚିତ୍ର ଆରମ୍ଭ କରିଦେଲେ । ଗୋ-ବୀଜ ଟୀକା ନେଉଥିବା ବ୍ୟକ୍ତିର ମୁହଁ ଉପରେ ଗାଈ ମୁହଁ ହୋଇଯାଉଛି ଓ ତାର ନାକ କାନରୁ ଉପରି ମୂଷା, ଜିଆ ପ୍ରଭୃତି ବାହାରୁଛନ୍ତି, ଏସବୁ ଚିତ୍ରିତ କରି ପ୍ରକାଶ କରିଦେଲେ ।

× × × ×

"ସତ୍ୟମେବ ଜୟତେ" । ବହିର୍‌ଦେଶ ବିଦେଶରେ ଗୋ-ବୀଜ ଟୀକାର ସଫଳତା ପରୀକ୍ଷା ଦ୍ୱାରା ପ୍ରମାଣିତ ହେଲା । ଲଣ୍ଡନର କେତେକ ଡାକ୍ତର ଜେନର୍‌ଙ୍କୁ ଲଣ୍ଡନ ଆସିବାକୁ ଅନୁରୋଧ କଲେ ଏବଂ ସହସ୍ରାଧିକ ଟଙ୍କା ରୋଜଗାର କରିବାର ସମସ୍ତ ସୁବିଧା ଏଠାରେ ଅଛି ବୋଲି ଜଣାଇଲେ । ଜେନର୍ ଅର୍ଥର ଉପାସକ ନୁହନ୍ତି । ତେବେ ତାଙ୍କର ଏତିକି ଭୟ ହେଲା ଯେ ଯଦି କେହି

ଗୋ-ବୀଜ ଟୀକା ଉତ୍ତମ ଭାବରେ ନ ଦଏ ତେବେ ଫଳ ବିପରୀତ ହେବ ଏବଂ ତାଙ୍କର ତଥ୍ୟ ବୃଥା ହୋଇଯିବ । ତେଣୁ ସେ ଲଣ୍ଡନ ଯାତ୍ରା କଲେ । ଲଣ୍ଡନରେ ବିନା ପଇସାରେ ଅନେକଙ୍କୁ ଟୀକା ଦେଲେ । ବସନ୍ତ ରୋଗ ପରାଜୟ ସ୍ୱୀକାର କଲା । କିନ୍ତୁ ଲଣ୍ଡନର କୋଳାହଳ ନଗରର ବାତାବରଣ ତାଙ୍କୁ ନଗରରେ ରଖି ପାରିଲା ନାହିଁ । ଜେନର୍ ବର୍କ୍ଲେ ଫେରି ଆସି ନିଜ ସ୍ଥାନରେ ବିନା ପଇସାରେ ରୋଗୀର ସେବା ଆରମ୍ଭ କରିଦେଲେ । ପାର୍ଲାମେଣ୍ଟ ଜରିଆରେ ତାଙ୍କ ପାଇଁ ଅର୍ଥ ମଞ୍ଜୁର କରାଗଲା । ଭାରତ ସରକାର ତାଙ୍କୁ ୫୦୦୦ ପାଉଣ୍ଡ ଦାନ କଲେ । ସ୍ପେନ ସରକାରର ଗୋ-ବୀଜ ଟୀକାରେ ପୂର୍ଣ୍ଣ ବିଶ୍ୱାସ ଆସିଗଲା । ଫଳରେ ସ୍ପେନର ଦକ୍ଷିଣ ଆମେରିକା ଅଧିକୃତ ଅଞ୍ଚଳରେ ବସନ୍ତ ନିବାରଣ କରିବା ପାଇଁ ଡାକ୍ତର ଦଳ ପଠାଗଲେ ।

ପୃଥିବୀର ଚାରିଆଡ଼େ ଜେନର୍ଙ୍କ ପ୍ରଶଂସା କହିଲେ ନ ସରେ । ଏହି ସମୟରେ ଫ୍ରାନ୍ସ ଓ ଇଂଲଣ୍ଡ ମଧ୍ୟରେ ଯୁଦ୍ଧ ଲାଗିଥିଲା । ଫ୍ରାନ୍ସର ସମ୍ରାଟ ନେପୋଲିଅନ ଦୁଇଟି ଇଂରେଜଙ୍କୁ ବନ୍ଦୀ କରିଥିଲେ । ଇଂରେଜ ସରକାର ଯେତେ ଅନୁରୋଧ କଲେ ମଧ୍ୟ ନେପୋଲିୟନ ବନ୍ଦୀଦ୍ୱୟଙ୍କୁ ମୁକ୍ତ କରି ନ ଥିଲେ କିନ୍ତୁ ପ୍ରବାଦ ଅଛି, ଜେନର୍ଙ୍କ ଅନୁରୋଧରେ ନେପୋଲିୟନ ବନ୍ଦୀଦ୍ୱୟଙ୍କୁ ମୁକ୍ତ କରିଥିଲେ । ଜେନର୍ଙ୍କର ବିଷୟରେ ଅନେକ କଥା ଶୁଣାଯାଏ । ସେ ଲୋକଙ୍କର ଭ୍ରାନ୍ତ ଧାରଣା ଦୂର କରିବା ପାଇଁ ଦିନେ ବର୍କ୍ଲେ ସହରରେ ଜନତା ସମ୍ମୁଖରେ ବକ୍ତୃତା ଦେଉଥାନ୍ତି ।

× × × ×

ଜେନର୍ କହିଲେ, "ତୁମେମାନେ ସେ ଦିନ କହୁଥିଲ ଯେ ଆକାଶରେ ଭୂତ ପ୍ରେତ କେବଳ ଯିବା ଆସିବା କରନ୍ତି, ବାୟୁରେ